# କାବ୍ୟ-କୁସୁମ



ଶ୍ରୀ ବାଞ୍ଛଧର ମହାନନ୍ଦିଆ

"ଦୀପକ ମହଲ"ର ପ୍ରଥମ ଅବଦାନ

# କାବ୍ୟ-କୁସୁମ

ରଚୟିତା

ଶ୍ରୀ ବାଇଧର ମହାନନ୍ଦିଆ

ପ୍ରଥମ ମୁଦ୍ରଣ

ପ୍ରକାଶକ

ଶ୍ରୀ ଘନଶ୍ୟାମ ମହାନ୍ତି

ମହାପ୍ରସାଦ ବ୍ରଦର୍ସ, କଟକ

ମୂଲ୍ୟ ଆଠଅଣା

# ଉତ୍ସର୍ଗ ପତ୍ର

ମହାମାନ୍ୟବର, ବିଦ୍ୟା-ଦୟା-ଦାକ୍ଷିଣ୍ୟ-ଯୁକ୍ତ, ସାହିତ୍ୟାନୁରାଗୀ

ଅଷ୍ଟମଲ୍ଲିକାଧୀଶ୍ୱର

ରାଜା **ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ଦେବ** ମହୋଦୟ,

ମହନୀୟ ଚରଣେଷୁ

ଶ୍ରୀ ଶ୍ରୀମନ୍ମହାରାଜ !

ବଣର ଫୁଲ ବଣରେ ଫୁଟି ଝଡ଼ିପଡ଼େ । ତାର ଶୋଭା-ସୌରଭରେ ବିରାଟ ଜଗତ ମୁଗ୍ଧ ହୋଇ ପାରେ ନା । ସେହିପରି ଦିନେ ମୁଁ କ୍ଷୁଦ୍ର ପଲ୍ଲୀଗାଁ ର କେଉଁ ନୀରବ କୋଣରେ ଝଡ଼ି ପଡ଼ିଥାନ୍ତି । କିନ୍ତୁ ମଙ୍ଗଳମୟଙ୍କ ନିର୍ଦ୍ଦେଶ ଅନ୍ୟପ୍ରକାର । ଆଜି ଶ୍ରୀଛାମୁଙ୍କର କୃପାଲୋକ ତଳେ ବିଶ୍ୱ-ଜଗତର ମହତ୍ତ୍ୱ ଉପଲବ୍ଧି କରିବାକୁ ସମର୍ଥ ହୋଇଅଛି ।

ଶ୍ରୀଛାମୁଙ୍କର ସାହାଯ୍ୟ-ସହାନୁଭୂତି ପ୍ରାପ୍ତ ହୋଇ ନ ଥିଲେ ମୋର ଉଚ୍ଚଶିକ୍ଷା ସ୍ୱପ୍ନରେ ପରିଣତ ହୋଇଥାନ୍ତା ମାତ୍ର । ମୋ'ପରି ଅନ୍ୟ ଅନେକ ଗରିବ ଛାତ୍ର ମଧ୍ୟ ଶ୍ରୀଛାମୁଙ୍କ କୃପା ଲାଭ କରି ଧନ୍ୟ ହୋଇ ଅଛନ୍ତି । ଶ୍ରୀଛାମୁଙ୍କର ସାହିତ୍ୟ-ରସିକତା, ଗ୍ରାହକତା, ବିଚକ୍ଷଣତା, ବିଦ୍ୟା-ଗୌରବ ଓ ପ୍ରଜାରଞ୍ଜନ ଉତ୍କଳରେ ସୁପରିଚିତ ।

ଶ୍ରୀଛାମୁଙ୍କର ଏବଂବିଧ ସଦ୍‌ଗୁଣରାଜି ଅବଲୋକନ କରି ଶ୍ରୀଛାମୁଙ୍କ ପ୍ରତି ମୋର ହୃଦୟରେ ଗଭୀର ଭକ୍ତି ଜାତ ହୋଇଅଛି । ତାର ନିଦର୍ଶନ ସ୍ୱରୂପ ଆଜି ମୋର "**କାବ୍ୟ-କୁସୁମ**" କର-କମଳରେ ଅର୍ପଣ କଲି । ତାର ମୃଦୁ ସୌରଭରେ ଯଦି ଶ୍ରୀଛାମୁଙ୍କର ପ୍ରଶସ୍ତ ହୃଦୟ କ୍ଷଣକ ପାଇଁ ମୁଗ୍ଧ ହୁଏ ତାହାହେଲେ ଜୀବନ ଧନ୍ୟହେଲା ବୋଲି ମନେ କରିବି । ଇତି ।

କନ୍ଦପଡ଼ା
ଆଠମଲ୍ଲିକ

ଶ୍ରୀଛାମୁଙ୍କର
ଏକାନ୍ତ ବିନୟାବନତ
ଶ୍ରୀ ବାଇଧର ମହାନନ୍ଦିଆ

# ନିଜକଥା

"କାବ୍ୟ-କୁସୁମ" ଯେ ଏତେଶୀଘ୍ର ପ୍ରକାଶିତ ହେବ ଏପରି ଆଶା ନଥିଲା । ଉତ୍କଳର କେତୋଟି ପତ୍ର ପତ୍ରିକାରେ ମୋର ଗଳ୍ପ, କବିତା ପ୍ରକାଶ ପାଇବାରୁ କେତେକ ବନ୍ଧୁ ମୋତେ ଗୋଟିଏ କବିତା ବହି ଛପାଇବାକୁ ଉତ୍ସାହ ପ୍ରଦାନ କଲେ । ଫଳରେ "କାବ୍ୟ-କୁସୁମ" ବାହାରର ଆଲୋକ ଦେଖିବାକୁ ପାଇଲା ।

ଏଥିର ଅଧିକାଂଶ କବିତା ପୂର୍ବରୁ 'ଅନୁଗୋଳ ହାଇସ୍କୁଲ ପତ୍ରିକା' 'ଦୈନିକ ଆଶା'ର ରବିବାସରୀୟ ସଂଖ୍ୟା ଏବଂ ଉତ୍କଳ ସାହିତ୍ୟ ସମାଜର ମୁଖପତ୍ର 'ଜାଗରଣ'ରେ ପ୍ରକାଶିତ ହୋଇଥିଲା । ବାକି କେତୋଟି ଅପ୍ରକାଶିତ ଥିଲା ।

"କାବ୍ୟ-କୁସୁମ"ର ପ୍ରକାଶନରେ ଯେ ଉତ୍କଳ-ସାହିତ୍ୟର କୌଣସି ବିଶେଷ ଅଙ୍ଗ ପୂରଣ ହୋଇଯିବ ଏପରି ଭ୍ରମ ଏହା ମୁଁ ପ୍ରକାଶ କରୁନାହିଁ । ସାମୟିକ ରସାସ୍ୱାଦନର ମୂର୍ଚ୍ଛନାକୁ ରୂପ ଦେବାକୁ ଯାଇ ମୋର ତରୁଣ ହୃଦୟରେ ଯେଉଁ ଗମ୍ଭୀର ଆନନ୍ଦ ଜାତ ହୋଇଥିଲା ତାହାହିଁ ଏଥିରେ ପ୍ରସ୍ଫୁଟିତ ହୋଇଅଛି । ଯଦି କୌଣସି ପାଠକ ଏହା ପାଠକରି ଉକ୍ତ ଆନନ୍ଦକୁ କିଞ୍ଚିତ ଉପଲବ୍ଧି କରନ୍ତି ତାହାହେଲେ ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ପରିଶେଷରେ ବକ୍ତବ୍ୟ ଏହି ଯେ ମୋର ବନ୍ଧୁ ଏବଂ 'ଓଡ଼ିଶା ଗଡ଼ଜାତ ତାର'ର ସମ୍ପାଦକ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର ପୁସ୍ତକ ପ୍ରକାଶନଜନିତ ପ୍ରୁଫ୍ ସଂଶୋଧନ ପ୍ରଭୃତି ଅନେକ କାର୍ଯ୍ୟରେ ମୋତେ ନାନାଭାବରେ ସାହାଯ୍ୟ କରିଥିବାରୁ କୃତଜ୍ଞତା ଜ୍ଞାପନ ସଙ୍ଗେ ସଙ୍ଗେ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ।

ପଶ୍ଚିମ ଛାତ୍ରାବାସ
ରେଭେନ୍‌ସା କଲେଜ, କଟକ
ତା ୧-୧-୧୯୪୭

ଶ୍ରୀ ବାଇଧର ମହାନ୍ଦିଆ



ଉପହାର

ଶ୍ରୀଯୁକ୍ତ ____________ଙ୍କ କର-କମଳରେ

____________ର ନିଦର୍ଶନ ସ୍ୱରୂପ

ଉପହୃତ ହେଲା ।

ଲେଖକ

# କାବ୍ୟ-କୁସୁମ

## ଧର୍ମପଦ

—୧—

ବଙ୍ଗ-ସାଗର-ତଟ-ପ୍ରାନ୍ତରେ,
ଆମ୍ରବନର ଧାରେ
ବାର ବରଷର ବଢ଼ାଇ ପିଣ୍ଡ ସେ
ମନ୍ଦର-ଚୂଡ଼ା ମାରେ !
ସାଗର-ଲହରୀ ମତ୍ତ ଗରବେ
ମଥା ପିଟେ ଆସି ମନ୍ଦର ପଦେ
ସ୍ନିଗ୍ଧ ସୁନ୍ଦର ପଶ୍ଚିମ ନଭେ—
ନିଷ୍ପ୍ରଭ ଦଶେ ଚନ୍ଦ୍ର—
ତନ୍ଦ୍ରା-ଜଡ଼ିତ ଅଦୂର ନଗରୀ
ଉଠିନାହିଁ ଜାଗି ଶାଶ୍ବତ ସ୍ବନ
ଉଷାଲୋକ ତଳେ ବାଜନ ପ୍ରଭାତ—
ଶଙ୍ଖ ମଧୁର ମନ୍ଦ୍ର !
ନୀରବତା-କୋଳେ ବଟାଳୀ ପଥରେ
କଳଲୋକର-ପ୍ରାଣ ମନ୍ତ୍ରରେ
ଆମ୍ରବନର ଧାରେ—
ବାର ବରଷର ବଢ଼ାଇ ପିଣ୍ଡ ସେ
ମନ୍ଦର-ଚୂଡ଼ା ମାରେ !!—

—୨—

ଲୁପ୍ତ ଅତୀତ ପୁଣ୍ୟ ଦିବସେ
ଉତ୍କଳ ରାଜାଦେଶେ
ମନ୍ଦିର ଏକ ଗଢ଼ିଲେ ଶିଳ୍ପୀ
ବିରାଟ ମଞ୍ଜୁ ବେଶେ !—
ବାରଶ' ଶିଳ୍ପୀ ଦିବାନିଶି ଧରି
ମନ୍ଦିର-ଚୂଡ଼ା ନ ପାରିଲେ ମାରି
କ୍ରୋଧେ ମହୀପତି ଆଜ୍ଞା କହିଲେ
—"ଅରେ ଅଯୋଗ୍ୟ ଦଳ !
ଯାଅ ଚଞ୍ଚଳ ଆଜ ରଜନୀରେ
ମନ୍ଦିର-ଚୂଡ଼ା ମାରି ଦେଖାଅରେ
ମସ୍ତକ ତୁମ ଲୋଟିବ ଭୂଇଁରେ
ନହେଲେ ଏଥି ସଫଳ ।"—
ବାରଶ' ଜୀବନ ଆକୁଳ କ୍ରନ୍ଦନେ
ସ୍ତବ୍ଧ ଶଙ୍କିତ ମୃତ୍ୟୁ-ସପନେ
ଆମ୍ରବନର ଧାରେ—
ବକ୍ଷ-ବେଦନା ଚକ୍ଷୁଁ ଝରିଲା
ମନ୍ଦ୍ରିତ ହା-ହା-କାରେ !—

—୩—

ବଙ୍ଗ-ସାଗର-ତଟ-ପ୍ରାନ୍ତରେ
ସେ'ଦିନ ବାର'ଶ ମଥା—
ଚକ୍ଷୁ-ସଲିଳେ ଭିବ ନ ପାରିଲେ
କି' କହିବେ କେଉଁ କଥା !—

ସକଳେ ରହିଲେ ମସ୍ତକ ପୋଛି
ଚକ୍ଷୁଁ ଲଭିଲା ଉଲ୍ଲାସ-ଜ୍ୟୋତିଃ
ମୃତ୍ୟୁ-ସପନ ପ୍ରାଣେ ପ୍ରାଣେ ଦେଲା
ତିକ୍ତ ବେଦନା ଭରି
ବାର ବରଷର ବଢ଼ାଇ ପିଲାଟି
ମନେ ମନେ ସତେ କସ ଭାବିଲାଟି ?
ପକ୍ଷି ଶାବକ ସମ ସେ' ଯେ ଗଲା
ମନ୍ଦର-ଶିରେ ଚଢ଼ି !!
ଚନ୍ଦ୍ରା-ଜଡ଼ିତ ରଜନୀର ତଳେ
କାମ ଛଡ଼ିଗଲା ବଣ୍ଠାଳି ପଥରେ
ଆମ୍ରବନର ଧାରେ—
ବାର ବରଷର ବଢ଼ାଇ ପିଲା ସେ
ମନ୍ଦର-ଚୂଡ଼ା ମାରେ !!!

—୪—

ବଙ୍ଗ-ସାଗର-ଲହରୀ-ଲହରେ
ନାଚି ନାହିଁ ରବି ରେଖା
ମନ୍ଦର ଚୂଡ଼ା ଚୁମ୍ବିଲା ନଭ
ଗରବେ ଦେଖାଇ ମଥା !
ବିସ୍ମୟେ ମନେ ଗୃହିଁଲେ ସକଳେ
ବସିଛନ୍ତି ଧରମା ମନ୍ଦର ପରେ—
ଶାଶ୍ୱତ ଧାତ୍ରୀ, ଶିଳ୍ପେ ତାର ଗୁରୁ
ଦିବ୍ୟ ଅଲୋକ ଝରେ !
ଶୂନ୍ୟେ ବିରଜି ଅଲୋକ ମଧୁ ବେ'
ବସାଇଲେ ନେଇ ଧରମାକୁ କୋଳେ !—

ଲୁଚିଗଲା ଛବି କାହିଁ ନ ଫେରିଲା
ଧରମା ଯେ ଅଉ ଘରେ !!—
କାରଣ’ ଶିଳ୍ପୀ ଦେଖିଲେ ହରଷେ
ଜଗତ ଜାଣିଲା—“ଉତ୍କଳ-ଦେଶେ
ଅମ୍ରବନର ଧାରେ—
ବାର ବରଷର ବଢ଼ାଇ ବାଳକ
ମନ୍ଦର-ଚୂଡ଼ା ମାରେ ।”—



## ମହାତ୍ମା

—୧—

ମୁକତି-କାମୀ ଶ୍ରେଷ୍ଠ ବୀର ବିଶ୍ୱ-ଜନ— ବନ୍ଦନୀୟ
ସତ୍ୟ-ପଥ— ପଥିକ-ରାଜ ସିନ୍ଧୁସମ ଶାନ୍ତ ପ୍ରିୟ !
ଧ୍ୱାନ୍ତ-ହର ଭାରତ-ନଭ କାନ୍ତ ତନୁ ଶୁଭ୍ର ତାରା
ଭ୍ରାନ୍ତ ଜନେ ଦେଖାଏ ପଥ ସ୍ନିଗ୍ଧ ତବ ଆଲୋକ-ଧାରା
ସାନ୍ଦ୍ର ନୀଳ ଜଳଦ ତୁମେ ମନ୍ଦ୍ର ତବ ବୃଷ୍ଟି—ଧାରେ
ସ୍ନିଗ୍ଧ କର ଜଗତ-ମରୁ ଶାନ୍ତ ଶୋଭା—ଶସ୍ୟ-ଭାରେ !—
ସିଂହ ତୁମେ ଭାଙ୍ଗ ଆଜି ଏ ଦେଶ ଶତ ବନ୍ଦୀ-ଖାନା
ବିଶ୍ୱ-ବୁକେ ଗରବେ ଚାଲ ଗଗନେ ଠେକ ମୁକ୍ତି-ବାନା !—

—୨—

ଏ କାଳ-ନିଶା— ଅନ୍ଧକାରେ ସୈତାନର ଖଡ୍ଗ-କଣ୍ଠ
କ୍ଳାନ୍ତ କରେ ସକଳ ଜନେ ଏ ଦେଶ-ପୂଜା-ପୁଣ୍ୟ-ପୀଠ !
ଦେଖ ହେ ଆଜି ସୁଷମା-ରାଜି ଏ ଦେଶ-ତନ୍ତ୍ର ଯାଉଛି ଚାଲି
କାନ୍ଦେ ଖାଲି ଦଳିତ ନର ନିଷ୍ପିଷ୍ଟ ସେ ଲୋତକ ଢାଳି !

ବୃକ୍ଷ-ମୂଳେ ମାନବ-ଶିଶୁ କ୍ଷୁଧାରେ ତେଜେ ବକ୍ଷ-ଶ୍ୱାସ
ଧୂଳିର ଶେଯେ ନଗ୍ନ ନାରୀ ତେଜଇ ଶେଷ—ମୃତ୍ୟୁ-ଗ୍ରାସ !!
ବିଜନ ଘାଟେ ବାଟେ ଅବାଟେ ମଣିଷ-ମଡ଼ା ଗନ୍ଧେ ପଡେ
ଶୃଗାଳ ସାଥେ ଗୃଧ୍ର ଶ୍ୱାନ ଶମଶାନରେ ଛନ୍ଦ ରଚେ !!!

—୩—

ପଙ୍ଗୁ ଦେଶ ଗୃହେଁ ହେ ଅଛ ତୁମରେ ବୀର ତୁମର ବଳ
ତୁମେହିଁ ଦେବ ଏ ଦେଶ-ବୁକେ ଫୁଟାଇଁ ନବ ମୁକ୍ତି-ଫୁଲ !
ଉଇଁଛ ତୁମେ ପରିଚୀ-ନଭେ ଅତ୍ୟୁଦ୍ଭୂତ ଶୁକ୍ର ତାରା
ପ ହ୍ବିବ ଏବେ ପ୍ରଭୃତ-ରାଗେ ଏ କାଳ-ନଶା—ଧ୍ୱାନ୍ତ-ଭରା !
ବିଶ୍ୱାଚଳେ ମୁକ୍ତି-ରବି ଅସିବ ଉଇଁ ଅଙ୍କି ଛବି
ଜଗତ-ବୁକେ ମୈତ୍ରୀ, ପ୍ରୀତି ସାମ୍ୟ, ଦୟା ପଡ଼ିବ ସ୍ରବି !
ଗରବେ ଗୃହ ଶ୍ରେଷ୍ଠ ବୀର ଗଗନେ ଟେକି ମୁକ୍ତି-ବାନା
ଧ୍ୱଂସ ହେଉ ତୁମର ପାଦେ ଏ ଦେଶ ଶତ ବନ୍ଦୀଶାଳା !!!



## ବସନ୍ତ-ଆବାହନ

(୧)

ନନ୍ଦନ-ଅଳୋକେ ଅଜ
ହସାଇ ନୀରବ ଏଇ—
ନୀରସ ଧରା
କାନନେ ପ୍ରାନ୍ତରେ ନଭେ
ସୁଷମା-ସୁନ୍ଦର-ମଞ୍ଜୁ-
ହୃଦୟ-ହରା !—

କୋକିଳ-କଣ୍ଠେ ଶୋ ବାଢ଼ି
ମଧୁର କୂଜନ-ସୁଧା-
ସଙ୍ଗୀତ ତାନ
କୁସୁମ-ସୌରଭେ ମୋହ୍ନ
ହ୍ଳାଦ-ବିବଶା-ବିଶ୍ୱ-
ମାନବ-ପ୍ରାଣ !

ନିକୁଞ୍ଜେ ନିକୁଞ୍ଜେ ବାଇଁ
ପାଗଳ ମଧୁପ-କଣ୍ଠେ-
ଗୁଞ୍ଜନ-ବୀଣା
ମୃଦୁଳ ସମୀରେ ଚୂତ-
ମୁକୁଳ ନଚୁଇ ସ୍ଫୂର୍ତ୍ତି-
ଚୁମ୍ବନ-କ୍ଷଣା !

ପସୁର ପରଶେ ଶତ
ଶୋଭିର ଘସ ଗୋ ରଚ
ଏ ଧର-ପଥେ
—"ଧୀରେ ଆସ ଅବତର
ରୁତର ବସନ୍ତ ମୃଦୁ—
ମଳୟ-ରଥେ ।"

( ୨ )

ଧରଣୀ-ଦୁଆରେ ଢ଼ାଳ
ମଧୁର ସୌରଭ-ଭରି—
କୁସୁମ-ଡାଲି
ସୁରଙ୍ଗେ ସଜାଇ ଭୂଷା—
ଊଷସୀ-ଲଗନେ ନବ-
ବନ୍ଦନ-ମାଳା !—
ସଧୀରେ ବରଷି ରକା—
ନଶିଥେ ଜୋଛନା ମନ—
ନୟନ-କାର

ସୁଦୂର ବିଜନ ପଲ୍ଲି-
ବିରହୀ-ପରାଣେ ଆଶା
ଅମୃତ-ଧାର !
ଫୁଟାଇ ପ୍ରେମର ଫୁଲ
ନବୀନ ବିରହୀ ଦଗ୍ଧ
ହୃଦୟ-ବନେ
ବଜାଇ ମରମେ ତାର
ମିଳନ-ବଇଁଶି ମୃଦୁ
ମଧୁର ସ୍ୱନେ !
ବିରହେ ମିଳନ, ଦୁଃଖେ
ସୁଖର ବାସର ଅଣି
ଏ ଧରା-ପଥେ
"--ଧୀରେ ଆସ ଅବତରି
ଋତୁର ବସନ୍ତ ମୃଦୁ-
ମଳୟ-ରଥେ ।"

( ୩ )

ଅଜଣା ଜୀବନ-ସଖା
ରଜନୀ ସୁଦୂରେ ପ୍ରେମ-
ବାଂଶୋରୀ ବାଇ
ଗଗନେ ପବନେ ଅବା
ସାଗର-ତରଙ୍ଗେ ମୁଁ ଗୋ
ଜାଣେ ତ ନାହିଁ !
ପ୍ରେମର ବାରତା ଆଣି
କହଗୋ ସଧୀରେ ମୋର
ସଂସାର-କାନେ

ଚନ୍ଦ୍ରମ-ଆଲୋକେ ମୁଁ ଯେ
ନାଚିବି ଗାଇବି ଗୀତ
ମଧୁର ତାନେ !
ନବୀନ ହୃଦୟ ଦୀନ-
କୁଟୀର-ଦୁଆର ମୋର
ହସିବ ରଙ୍ଗେ
ଚଳିବି ଜୀବନ-ପଥେ
ହରଷେ ଜଗତେ ଭାଇ-
ଭଗିନୀ ସଙ୍ଗେ !
ଜାଗିଛି ଭକତି-ପୂତ
ଅନ୍ତରେ ବାନ୍ଧିବି ତବେ
ଏ ଧରା-ପଥେ-
"ଧୀରେ ଆସ ଅବତରି
ରୁଚିର ବସନ୍ତ ମୃଦୁ-
ମଳୟ-ରଥେ !"



## ବିରହିଣୀ ଶକୁନ୍ତଳା

ଅୟି ଅନୁପମ !
ଅଭାଗିନୀ ମୁନିକନ୍ୟା—
ସତେ କି ହେ ଭୁଲିଗଲ ?
ହୃଦ ତବ ମୁନିକନ୍ୟା—
ମନେ ଅଛି ? ନ ଜାଗେ କି
ଶାନ୍ତି-ପୂତ ତପୋବନ-
ନୃତ୍ୟରତା ମାଳିନୀର
ଶାନ୍ତ ଲତା-ପତ୍ର-ମେଳେ

ପ୍ରାଣ-ପ୍ରିୟତମ !!
ନପାଏ କି ଦ୍ରବି
ଅବସାଦ-ଛବି
ସ୍ମୃତି-ପଟେ ତବ
କେକା-କେକୀ ରବ ?
ମୃଦୁ କଳ-ତାନ
ବିହଙ୍ଗମ-ଗାନ !

କ୍ରୀଡ଼ାରତ ମୃଗ-ମୃଗୀ
ସରଳା-ତାପସ-ବାଳା
ସତେ କି ହେବ ଭୁଲିଗଲ ?
ବିଦାୟ ବେଳର ଘନ-
ଅବଳା-ସୁଲଭ ଗୁଣେ
ନତ କରି ମୁଖ ଯେବେ
ହସ୍ତ କାଢି ଅଙ୍ଗୁରୀୟ
ଛନ୍ଦୋମୟ ବାକ୍ୟ ପର

ରୂପ-ରାଜ୍ୟ-ଅଧୀଶ୍ୱରୀ-
ନ ମୁଞ୍ଛି ନୟନୁ ନୀର,
ଫେରିଗଲେ ନ ଆସିବ
ଘନ-ସୁକେଶିନୀ ଶୃଣୁ
ବୃଥା ଅଗୋ ନେତ୍ର-ନୀର
ରାଜ୍ୟେ ହେଲେ ଉପଗତ
ନେଇଯିବ ପ୍ରାଣ-ସଖି
ହଥ ଏହି ଅଙ୍ଗୁରୀୟ
ସ୍ମରୁଥିବ ସଖି ମୋତେ;
ଦୁର୍ବହ ବିଚ୍ଛେଦେ ଥିବ ।
ଲଭିବ ପରଶ ମୋର
କହୁଛି ବହୁତ ଅଗୋ
ଅଧୀର ନ ହେବ ବାଳା
ବସି ଶାନ୍ତ ଅକମ୍ପିତ
ଉନ୍ମାଦିବ ନାହିଁ ବକ୍ଷ
ଘନ ପଲ୍ଲବିତ କୁଞ୍ଜେ
ହେବ ନାହିଁ ମ୍ରିୟମାଣ
ତୁମି ବୁକେ ସ୍ମର ମୋତେ !"

ଚଞ୍ଚଳ ଗୃହ୍ମାଁଣୀ
ସୁଧା-କଣ୍ଠ-ବାଣୀ ?
ପ୍ରଣୟ, ମମତା
ଅଶ୍ରୁ ନୀରବତା !!
ସଜଳ ନୟନେ
ବିଦାୟ ଲଗନେ
ସାନ୍ତ୍ୱନା ବରଷି
ଭାଷିଲ ରହସି—
"ଅଗୋ ମନୋରମା,
ପ୍ରାଣ-ପ୍ରିୟତମା !
ଭୁଲିବଛ କି ସତେ ?
ତପୋବନ ପଥେ ?
ଗୋଲାପ-ବଦନା,
ଆକୁଳେ ମୁଞ୍ଚନା !
ସମ୍ଭାର-ଆମୋଦେ,
ମୋ ରାଜ-ପ୍ରାସାଦେ ।
ପ୍ରେମ ସ୍ୱଚ୍ଛ-ଛନ୍ଦ
ଦୀର୍ଘ ଯେତେ ଦିନ
ଅଙ୍ଗୁରୀୟ ସ୍ପର୍ଶେ
ପ୍ରଣୟ-ଉରସେ ।
ରହସ୍ୟ-ମଧୁରା
ପ୍ରଣୟ ବିଧୁରା ।
ଗୁରୁ ଚମ୍ପା ତଳେ
ତପ୍ତ ଅଶ୍ରୁ-ଜଳେ !
ମୋ ମାନସ-ରାଣୀ
ଦୁଃଖେ ରେଖା ଟାଣି

ଭୁଲିଗଲି କେବେ ପ୍ରିୟ
ଉଷା-ସନ୍ଧ୍ୟା-ସ୍ନିଗ୍ଧାଲୋକେ
ହୁଏ ନାହିଁ ପ୍ରୀତିମୟ
ଥିଲେ ଆଜ ପ୍ରାଣ-ପ୍ରିୟ
ହୃଦୟ ଗୁମର କାନ୍ଦେ

ଯେ'ଦିନ ଗୁରୁଚରଣ
ଚିହ୍ନିଲି ପ୍ରଥମେ ତବ,
ହସିଥିଲି ବନ-ରାଣୀ
ଲତା-କୁଞ୍ଜେ ଫୁଲ ଲଭି
ହସିଥିଲି ଶୁଭ୍ର ଶାନ୍ତ
ସମୀରେ ଲତା-ସତର
ପୁଷ୍ପ-କାନେ ମଧୁକର
ସ୍ୱାଗତ ବନ୍ଦନା ତବ
ମିଳନ ବାଂଶରୀ ସଖା
ସ୍ଫଟିକ ନିର୍ମଳ ସ୍ୱଚ୍ଛ
ମୃଦୁ କଳତାନେ ସୃଜି
ବହିଲା ଝରା ଉଦ୍‌ବେଗେ
ପୁଷ୍ପ-ସୌରଭ ଛୁଟିଲା
ନୃତ୍ୟ-ରଙ୍ଗେ ମୁଗ୍ଧ ପ୍ରାଣେ
କାକଳି-ସଙ୍ଗୀତେ ତୃପ୍ତ
ରଚିଲେ କବା ଉତ୍ସବ !
ବାଜିଲା ମିଳନ ବଂଶୀ
ପଲ୍ଲବିତ ପ୍ରାଣ-ତଳେ
ପ୍ରେମ-ପୁଷ୍ପ-ଅର୍ଘ୍ୟ ଢାଳି ।

ସେ ସକଳ ସତେ ?
ନ ଯାଏ ପରତେ !
ତପୋବନ-ଶୋଭା
ମୃଦୁ ମନୋଲୋଭା
ଭ୍ରମର ସ୍ୱରବେ
ଅଶ୍ରୁ ଧାର ବହେ !

ଅଛି ଅଛି ମନେ—
ଏହି ତପୋବନେ
ଅପାର ଆବେଗେ
ପ୍ରେମ-ଅନୁରାଗେ ।
ଲଳିତ ଯୌବନ
ସ୍ନିଗ୍ଧ ଶୋଭାବନ !!
ସଧୀରେ ମର୍ମର
ସପ୍ରେମେ ଗୁଞ୍ଜରି—
ରଚିଲେ ମଧୁରେ
ବାଜିଲା ମଧୁରେ !
ମାଳିନୀ ତଟିନୀ
ସ୍ୱଚ୍ଛ ରାଗିଣୀ !
କାନନ ମର୍ମର
ସମୀରେ ସଞ୍ଚର !
କୁରଙ୍ଗ କୁରଙ୍ଗୀ
ବିହଙ୍ଗ ବିହଙ୍ଗୀ—
ଗଗନେ ପବନେ
ଅମୃତ ଲଗନେ ।
ପୂଜିଲି ଚରଣ

ଶତ ସ୍ମୃତି ଜାଗେ ଆଜ
ଶ୍ୟାମ ସ୍ନିଗ୍ଧ ଶାନ୍ତ-ପୂତ
ବିଲୋକିଲି ରୂପ ତବ
ଲାବଣ୍ୟ-ରଞ୍ଜିତ ତନୁ
ଉନ୍ନତ ଲଲାଟ ହସ୍ତ
ମିଳନର ଆଦ୍ୟ ଦିନେ ।
ନ ମେଣ୍ଟିଲା ରୂପ-ତୃଷା
ଫେରି ଗୃହିଁ ବିଲୋକିଲି
ପଦ୍ମପାଦେ ଢ଼ାଳି ପ୍ରାଣ—

ଅତେବ ଅନୁପମ,
ହୃଦ-ପଟେ ମମ—
ସ୍ତବ୍ଧ ତପୋବନେ
ସସ୍ମିତ ବଦନେ
ପ୍ରଶାନ୍ତ ବଦନ
ପଦ ମନୋରମ—
ଯାଉଁ ଅନ୍ତରାଳେ
କଣ୍ଟା-ଲଗା-ଛଳେ
ଲାବଣ୍ୟ-ମୂରତି
ପ୍ରଣୟ-ଆରତି !!!

କରୁଣ କୋମଳ ଆଖି
କି ଭୁଲିବ ଯା' ଘଟିଛି
ନବ ଫୁଲ୍ଲ-ପୁଷ୍ପ-ଦଳ-
ଗୋଧୂଳିର ସ୍ୱର୍ଣ୍ଣାଲୋକେ·
ଜଳ ଢ଼ାଳୁଥିଲି ଯେବେ
ଦୁଷ୍ଟ ଭୃଙ୍ଗ ଦେଇ କମ୍ପ
'ହଟହଟା' କଲା ମୋତେ
ସ୍ଖଳିଲି ତୁମରେ ଯେନ
କୁନ୍ଥକ ପଶ୍ଚେ ସ୍ନିଗ୍ଧ
ହସ୍ତ-ଘାତେ ଦୁଷ୍ଟ ଭୃଙ୍ଗେ
ହାସ୍ୟ-ମୁକୁଳିତ ମୁଖେ
ଭଣିଲି ମଧୁରେ "ଅୟି,
ଦୁଷ୍ଟ ଯୋଗୁଁ ନ ହେବ ଗୋ

ହେ ହୃଦୟେଶ୍ୱର,—
ଗମ୍ଭୀର ସୁନ୍ଦର !
ତୁମର ମିଳନେ
ଦୀପ୍ତ ତପୋବନେ
ପୁଷ୍ପ-ବୃନ୍ତ ତଳେ
ସଖୀଙ୍କର ମେଳେ
କୁସୁମ ମଞ୍ଜରି
ମୋ ମୁଖେ ଗୁଞ୍ଜରି !—
ସଜନୀ-ଆଦେଶ
ହୋଇଲି ପ୍ରବେଶ
ଅଳପେ ବହାଗି
ମୋ ନିକଟେ ଆସି ।
କୁସୁମ-ଭୂଷଣା
ଆଉ ପଥ ବଣା !"

ଲଜ୍ଜାଭରେ ସଖୀ ମେଳେ    ନତ କଲୁ ମୁଖ
ମାରବେ ଭୋଗିଲୁ ସିନା    ପ୍ରେମ-ପ୍ରୀତି-ସୁଖ !!—

ସ୍ମର ମିଳନର ଅଦ୍ୟ    ଦିବସର କଥା
କମ୍ପମାନ ବକ୍ଷେ ଅଜି    ଜାଗେ ଗୁରୁ ବ୍ୟଥା !
ମଧ୍ୟାହ୍ନ ତପନ ଖର    ଘଣ୍ଟି ଛାଲ ତଳେ
ବସି ସଖୀ-ମେଳେ କୁଞ୍ଜ-    ବେତସ-ଗହ୍ୱଳେ
ସ୍ମର ତବ ରୂପ ଘଣି    ପ୍ରେମମୟ କଥା
ଲଭୁଥିଲି ପ୍ରାଣେ ଯେବେ    ଶତ ଶେଳ-ବ୍ୟଥା !
ରଚୁଥିଲି ପ୍ରେମ ପତ୍ର    ପୁଷ୍ପର ପଲ୍ଲବେ
ତବ ନାମେ ସଖା ଯେବେ    ପ୍ରେମ-ଅନୁରାଗେ !
ସେତେବେଳେ ତୁମେ କିଁବା    ପ୍ରେମ କଉତୁକେ
ଅସିଥିଲ କୁଞ୍ଜ ତଳେ    ଭରି ମନ-ସୁଖେ ।
ଦେଖି ତବ ଦିବ୍ୟ ତନୁ    ଉନ୍ନତ ବଦନ
ଅଳି ବୃନ୍ଦ ତେଜିଗଲେ    ମୋ କୁଞ୍ଜ ବନ୍ଧନ
ରହିଗଲି ଏକା ମୁଁ ଯେ    ସେ କୁଞ୍ଜ-ଗହ୍ୱଳେ
ମଜ୍ଜିଗଲି ପଲକେ ଯା'    ଲଜ୍ଜା-ସିନ୍ଧୁ-ଜଳେ !
କମ୍ପିତ ଚଞ୍ଚଳ ବକ୍ଷେ    ଦେଲ ଦେ ଅପନ
ଲଳିତ କପୋଳେ ମୋର    ମଧୁର ଚୁମ୍ବନ !!
ଲଭିଲି ସ୍ୱର୍ଗୀୟ ସୁଖ    ତୁମର ପରଶେ
ଲୁଚିଗଲା ପ୍ରାଣ ପୀଡ଼ା    ପ୍ରଣୟ ରଭସେ !!

ଏହି ଶ୍ୟାମ ସ୍ନିଗ୍ଧ ମୁଗ୍ଧ    ଶାନ୍ତ ତପୋବନେ
ଯେତେ ଯା' ଘଟିଛି ସଖା    ତୁମର ମିଳନେ
କି ଭୁଲିବି ଅଜି ତାହା ।    ଦୁଃସହ ବିରହେ
ଭଲ ନ ଲାଗଇ କିଛି ।    ଶୋକ ବକ୍ଷ ଦହେ ।

ଯେଣେ ଗୃହେଁ ତେଣେ ଦେଖେ ବିଷାଦ- ଉତ୍ସବ
ଲତା-କୁଞ୍ଜେ ବାଜେ ବଂଶୀ— କରୁଣତା-ରବ !
ଅରଣ୍ୟ କାନ୍ଦଇ ଆଜ ବିଷାଦ-ମର୍ମରେ
ବନଚ୍ଛାୟା ଶୋକାତୁର ଗାଢ଼ ଅନ୍ଧକାରେ !
ମର୍ମର କାନ୍ଦଇ ବାୟୁ ଲତା-ପତ୍ର-ମେଳ
ଶୁଷ୍କ ପତ୍ର ଝଡ଼ି ପଡ଼େ କି'ବା ଦୁଃଖ-ଭରେ—
କରୁଣ କପୋତ-କଣ୍ଠ ବିଷାଦ-ସଙ୍ଗୀତେ
ମୁଖରେ ଦିଗନ୍ତ କି'ବା ମୋ ଶୋକ-ଇଙ୍ଗିତେ !
ନୀରବେ କାନ୍ଦେ ନୟନୁଁ ଝରଇ ଲୋତକ
ମାତୃ-ସ୍ତନ୍ୟ-ପାନଭ୍ରାନ୍ତ କୁରଙ୍ଗ-ଶାବକ !—
ସକଳେ ବ୍ୟାକୁଳ ଦେଖି ଥିଲେ ଅନୁପମ
ପାଇଛି ଯା' ଦଶାନ୍ତର ସୁଖ-ସ୍ୱପ୍ନ ସମ ।
ଅଭାଗିନୀ ଦୁଃଖ-ଭାର ଫେରଇବାର ପାଇଁ
ତପୋବନେ ଆଉ କାରେ ଆସିବ କି ନାହିଁ ?

ଥିଲେ ମହାରାଜ !—
ଅଭାଗିନୀ-ଭାଗ୍ୟାକାଶ ଦୀପ୍ତିମାନ ସୂର୍ଯ୍ୟ !!
ଜାଣେ ଥିଲେ ଅଟ ତୁମେ ବିଶାଳ ରାଜ୍ୟର
ଶତ ରାଜା-ପୂଜାସ୍ପଦ ଶ୍ରେଷ୍ଠ ଅଧୀଶ୍ୱର,
ରାଜକର୍ମ ମହାଭାର ଅନେକ କାଳେ କାଳେ
ଥିବ କର୍ମ-ଅନୁରତ ସହସ୍ର ଜଞ୍ଜାଳେ ।
ଅବସର ନ ଥିବ ବା ଅଭାଗିନୀ-କଥା
ଭାବିବାକୁ ତିଳେ ହେଲେ ଆଉ କି ହେବ ତା ?—
ହେଲେ ମଧ୍ୟ ଆଶା ମୋର ନୋହିବ ତେବେ ଊଣା
ଅଭାଗିନୀ ପ୍ରତି ତବ ଶାଶ୍ୱତ କରୁଣା !

ଜାଣେ ଅଛ ପ୍ରେମମୟ  ଶର ଦୟାମୟ
ବିଶାଳ ରାଜ୍ୟର ଯଶଃ—  ସଉରଭ-ମୟ !!
ଦୃଢ଼ ଆଶା ତେଣୁ ପ୍ରିୟ  ହରିବ ମୁକର
ଏ ଦୁଃଖିନୀ-ଦୁଃଖ-ଭର  ଦୁଃସହ ଦୁସ୍ତର !!
କହୁଛ ହୃଦାୟୁ ଲଗ୍ନେ  ପ୍ରଣୟ-ଆମୋଦେ
—"ଯେଦନ ଯିବ ପ୍ରାଣସଖି  ମୋ ରାଜ-ପ୍ରାସାଦେ ।"—
ଦେଇଛ ତ ଅଙ୍ଗୁରୀୟ  ପ୍ରଣୟ-ସ୍ମାରକ
ହତାଶ ହେବ ମୁଁ କିପାଁ  ହେ ଅଧିନାୟକ !
କରିବ ତାହାକୁ ତ୍ରାଣ—  ପ୍ରେମର ସଙ୍କାଳ
ଯାପିବ ଦୁର୍ବହ କାଳ  ତବ ପ୍ରେମ ଭଳ
ଯାବତ ବିଚ୍ଛେଦେ ଥିବ ।  ଅମୃତ ଲଗନେ
ଆସିବ ହେ ପ୍ରେମମୟ  ଶାନ୍ତ ତପୋବନେ
ହରିବ ଦୁଃଖିନୀ-ଦୁଃଖ  ଭଷି ମଧୁକଥା
ପଲ୍ଲବ-ହଳୟେ ମମ  ଅଶ୍ରୁ-ଝରବତା
ବନ୍ଧବ ଭ୍ରମର ପ୍ରେମ—  କମ୍ପିତ ଚରଣ
ସାର୍ଥକ ହୋଇବ ତେବେ  ଦୁଃଖିନୀ-ଜୀବନ !!!—



## ଭ୍ରମର ସୃଜନ

—ଭ୍ରମର ସୃଜନ ସୁଷମାମୟ
ଚକିତେ ଗୃହେଁ ମୁଁ
ଥାହେ ତନ୍ମୟ ।।—

(୧)

ମଧୁର ମୃଦୁଳ ମଳୟ-ରଥେ
ଚଢ଼ି ମୁଁ ବୁଲିଲି ଏ ଧରା-ପଥେ
ଦେଖିଲି ତୁମର ସୃଜନ-ଶୋଭା
କି ମନୋଲୋଭା !

(୨)

ଊଷା-ଉରସୀର ମଧୁ ଲଗନେ
ଭୁଲିଯାଏଁ ମୁଁ ଗୋ ଶୋଭା-ସପନେ
ସରସ ସୁନେଲି କିରଣ ସାଥେ
ମନ ମୋ ମାତେ !

(୩)

ନିବିଡ଼ କାନନେ ତଟିନୀ ଗୀତି
ବିହଗ-କାକଳି ଜଗାଏ ପ୍ରୀତି
ସୁରଭି-ସୁରଭି-କୁସୁମ-ବାସ
ହରେ ପରଶ !

(୪)

ସୁନୀଳ ସାଗରେ ଲହରୀ ମାଳା
ତାଳେତାଳେ ଅହା କରନ୍ତି ଖେଳା
ଝଲମଲ ହସେ ସୈକତ-ଭୂଇଁ
ହୃଦୟ ଛୁଇଁ !

(୫)

ବସନ୍ତେ ଫୁଟିଲେ କୁସୁମ କଳି
ଚୁମ୍ବଇ ସଗର୍ବେ ତା ଗଣ୍ଡେ ଅଳି ;
ଦୂର ବନ-ପଥେ କୋକିଳ କୂଜେ
ବକୁଳ କୁଞ୍ଜେ !

( ୬ )

ସୁରଭି-ଶୀତଳ ଶାରଦ ରାତେ
ଖେଳଇ ଜୋଚ୍ଛନା ସମୀର ସାଥେ !
ସୁନୀଳ ଗଗନେ ଚନ୍ଦ୍ର ତରୀ
ପୀୟୂଷ-ଭରି !—

( ୭ )

ହେମନ୍ତର ହିମ-ମୁକୁତା-ମାଳେ
ଶୋଭନ ଏ ଧରା ଦଶେ ସକାଳେ
ଦଗେ ଦଗେ ଛୁଟେ ସଧୀର ବାଅ
ମଧୁର ଅହା !—

( ୮ )

ସ୍ୱଜନ ଅୟନେ ପଲ୍ଲି-ବାଳୀ
ରୁଲେ ଧୀରେ ଶୋଭି-ପୀୟୂଷ ଢାଳି
ହସ-ରେଖା ଟାଣି ଜବା-ଅଧରେ
କି'ବା ମଧୁରେ !—

( ୯ )

ଜଛି ମୁଁ ଦେଖୁଛି ନୟନ ଭରି
ସବୁରୁ ପଡ଼ୁଛି ସୁଷମା ଝରି !
ତୁମରି ସୃଜନ ଧରାରେ ଯେତେ
ଶୋଭନ ସେତେ !

(୧୦)

ତୁମରି ସୁନ୍ଦର ସୃଜନ ମୁଁ ଯେ
ଆସିଛି ଏ ଧରା ନୀରବ କୁଞ୍ଜେ ;—
ଅନ୍ତମେ ମିଶିବି ଭାବୁଛି ମନେ
ତବ ଚରଣେ !

—ତୁମର ସୃଜନ ସୁଷମାମୟ !—
ଚକ୍ଷୁତେ ଗୃହେଁ ମୁଁ
ଅହେ ଚିନ୍ମୟ !!—



## କବିତା-ରୂପସୀ

ଚିରନ୍ତନୀ,
ହେ ନିତ୍ୟଯୌବନା !
ଛନ୍ଦୋମୟୀ କବିତା-ରୂପସୀ !! —
ସୃଷ୍ଟିର କେ' ଆଦ୍ୟ କୁଞ୍ଜେ
ନେଲା ତବ ଆଦ୍ୟ ଅଭିସାର ?—
ଅବ୍ୟକ୍ତ କେ' ମୃତ୍ୟୁଞ୍ଜୟୀ ବୀଣା
ରଚିଲା ମଧୁରେ ତବ ସ୍ୱାଗତ ବନ୍ଦନା ? ?
କେ' ହୃଦୟ ଅମୃତ ଲଗନେ
ତବ କଣ୍ଠ ବାଣୀର ମାଦକେ
ହେଲା ବିଶ୍ୱ ପ୍ରେମେ ଆମ୍ବିଦସ ?—
ଅଲକ୍ତ-ରଞ୍ଜିତ ତବ ଶ୍ରୀପଦ-ମଞ୍ଜୀର
ମଗ୍ନହେଲା ମହାସ୍ରବେ ବିଶ୍ୱ ପ୍ରକୃତି !!
ସେ ସବୁ ଅଜଣା—
ବିଶ୍ୱ-ରନ୍ଧ୍ରେ ରନ୍ଧ୍ରେ କିନ୍ତୁ
ଜାଗିଉଠେ ନିତ୍ୟ—
ତୁମରି ସେ ଉଜ୍ଜ୍ୱଳ ମଧୁର ମୂର୍ଚ୍ଛନା !!

ଶତାବ୍ଦୀର ପଥେ—
ଶତ କବି ଗାୟକ ପୂଜକ ମିଳି ତବ ବିଶ୍ୱ ଦୁଆରେ
ଗାଇଲେ ମଧୁର କଣ୍ଠେ ସ୍ୱାଗତ-ବନ୍ଦନା !!

ଢାଳିଲେ ଚରଣେ ତବ ଶତ ଧୂପ-ଅର୍ଘ୍ୟ !!
ପ୍ରତିଦାନେ ତାର--
ଭାଲେ ଲେଖିଦେଲ ଛର ମୃତ୍ୟୁଞ୍ଜୟୀ ଟୀକା
କରୁଣା-ସଞ୍ଚିତ ତବ ଶ୍ରେଷ୍ଠ ଉପହାର
ଆଗୋ ରୂପମୟୀ !
ଆଦ୍ୟ-ଅନ୍ତ-ହୀନା ଗୃରୁ ସଙ୍ଗୀତ-ମାଳିନୀ
କଳତାନ-ମୟୀ !!

ଅଗୋ,
କବିତା-ରୂପସୀ !
କବି-କଳ୍ପ-ଲୋକ ଲୋଲ-ନୟନା ଉର୍ବଶୀ !!
ଆଜର ଏ ଊଷାଲୋକ ସ୍ୱର୍ଣ୍ଣ ଛବି-ସାଥେ
କେଉଁ ବର୍ଣ୍ଣେ ଆସିଛ ମୋ ତରୁଣ ଜୀବନେ ?
ଅଦୃଶ୍ୟ-ଇଙ୍ଗିତେ
ନୂପୁର-ନିକ୍ୱଣ ତୋଳି ଆସିଛ ଗୋ ସତେ
ଅନାହୂତ ଏଇ ମୋର
ଜୀବନ-ସଙ୍ଗୀତେ ?-

ଆସିଅଛ ଯେବେ ପ୍ରେମମୟୀ
ରହ ଥରେ ମୋ ଜୀବନ-ଦୁଆରେ ।
ସାଜେ ମୋର ଜୀବନ ଅର୍ଘ୍ୟ ପ୍ରୀତି-ଫୁଲହାର
ଛିନ୍ନ ବୀଣା-ତାରେ ମୃଦୁ ପୂରବୀର ତାନ
ସୁଧା-ଲଗ୍ନେ ପୂଜିବ ମୁଁ ତୁମର ଚରଣ !!
ପ୍ରତିଦାନେ ତାର-
ଭାଲେ ଲେଖିଦେବ ମମ ମୃତ୍ୟୁଞ୍ଜୟୀ ଟୀକା
ଜୀବନ-ବାଞ୍ଛିତ ଯାହା--
ବିଶ୍ୱ-କବି-ଶ୍ରେଷ୍ଠ ଅଧିକାର !!!



## କ୍ଷୁଧିତର ଅନ୍ତିମ ପ୍ରଳାପ—

ପଥଭ୍ରଷ୍ଟ,
ହେ ବିଦେଶାଗତ,
ବିଶ୍ୱର ବିରାଟ ଜନ ଉଦାର ମହତ !
ଦଣ୍ଡ ହୁଅ ବାରେ-
ଏ ଧୂସର ରାଜ-ପଥ-ଧାରେ !!!
ଆକୁଳିତ ପ୍ରାଣ ମୋର ମହା ତିକ୍ତ କ୍ଷୁଧାର ଆଘାତେ
ଭାଙ୍ଗି ପଡ଼େ ବକ୍ଷ ଦେଖ ହା-ହା-କାରେ ଘନ ବଜ୍ର-ପାତେ !
ତିକ୍ତ ବ୍ୟଥା ନ ପାରେ ମୁଁ ସହି—
ତୁଣ୍ଡେ ଦିଅ ଅନ୍ନ ମଧୁ ଦିଅ ଜଳ ଶାନ୍ତ ମୃତ୍ୟୁଞ୍ଜୟୀ !
ଶମିବ ମୁଁ କ୍ଷୁଧାର ବେଦନା
ଅନ୍ତରର ଆକୁଳ ପିପାସା
ଲଭିବ ମୁଁ ଜୀବନ ନବୀନ
ଛନ୍ଦମୟ କଣ୍ଠେ ମୃଦୁଭାଷା !—
ମଞ୍ଜୁଳ ଏ ବିଶ୍ୱ-ମହାପଥେ ;—
ରଚିବ ମୋ ଜୀବନର ସ୍ନିଗ୍ଧ ଅଭିଧାର
କାନ୍ତ ବୃକ୍ଷ ଲତାପତ୍ରେ ଶାନ୍ତ ନଭତଳେ !!—
ମୃତ୍ୟୁ ମୁଁ ଚାହେଁ ନା ପ୍ରିୟ
ଏ ବିରାଟ ସୁନ୍ଦର ଭୁବନେ
ବଞ୍ଚି ମୁଁ ରହିବ ସୁଖେ
ଜନତାର ମେଳେ—
ଛନ୍ଦୋମୟ ଚଞ୍ଚଳ ଯୌବନେ
ମଞ୍ଜରିତ ପ୍ରାଣେ !!—

ଭ୍ରାନ୍ତ ମୁଁ କି ?
ବଞ୍ଚି ମୁଁ ରହିବ ଭବେ ?—
ଦେବ ତୁମେ ତୁଣ୍ଡେ ମୋର ଅନ୍ନ ଜଳ ମଧ୍ୟ ଆସ୍ୱାଦନ
ଆହେ ପୁଣ୍ୟବାନ ??
ବଞ୍ଚି ଭବେ କି'ବା ପ୍ରୟୋଜନ ?
ନାହିଁ ଆଉ ଜୀବନେ ମମତା—
ଅନ୍ନ ଜଳେ ହରନାହିଁ ଏ ବେଦନା ଏ କ୍ଷୁଧାର ବ୍ୟଥା !
ଚଳିବି ମୁଁ ମୃତ୍ୟୁ-ପରପାରେ
ଅବ୍ୟକ୍ତ କେ ଶୂନ୍ୟ ନଭ-ପଥେ
ଅଲକ୍ଷିତେ ନୀଡ଼ ହରା ବିହଙ୍ଗମ ସମ
ମନ୍ଦଗନ୍ଧ ସମୀରଣ-ରଥେ !!—

ଶୁଣିବ କି ଥରେ ?
ଦିଗନ୍ତର ଗିରିବନ-ଉପତ୍ୟକା-ପାରେ
ସନ୍ଧ୍ୟା-ପକ୍ଷୀ-ମୁଖରିତ ଆମ୍ରବନ-ଧାରେ
ଗ୍ରାମ ଦାଣ୍ଡ ଶେଷେ—
ମୋ ଦୀନ କୁଟୀର କୋଣେ ଯା' ଘଟିଛି ଅତୀତ ଦିବସେ !!
ପ୍ରାଣ-ପ୍ରିୟତମା ମୋର ପ୍ରେମର ସଙ୍ଗିନୀ
ଅପୂର୍ବ ଶୋଭନା ନବ ଲାବଣ୍ୟ-ମଞ୍ଜୁଳା
ମୁଦିଲ ନୟନ ବେନି
ନିଦ୍ୱାରେ ଅନ୍ତିମ ତାପେ
ରୋଗ-ଶେଷେ ।

ମାତୃହୀନା ଶିଶୁ ମୋର ପ୍ରାଣର ପିତୁଳା
ଦୀର୍ଘ ଦିନ ଉପବାସେ ଆକୁଳ କ୍ରନ୍ଦନେ
ମାଗି ଦୁଗ୍ଧ ମାଗି ଖାଦ୍ୟ
ଛକ୍ତ ଅଭିମାନେ

କାଳନିଦ୍ରା ହସ୍ତେ ପଡ଼ି ଝଡ଼ିଲା ସେ ତଳ
ଝଞ୍ଜାଘାତେ ଯଥା ପୁଷ୍ପ କଳ !
ଭାଙ୍ଗିଲା କୁଟୀର ମୋର
ପକ୍ଷୀ ପଥେ ପଥେ—
ବୁଲିଲି ମୁଁ ସର୍ବହରା ବେଶେ
ରୋଗେ ଶୋକେ କ୍ଷୁଧାର ଅଘାତେ !!!

ଦେଖିଲି ସଂସାର
ଅବ୍ୟକ୍ତ କେ' ଜରା-ଜୀର୍ଣ୍ଣ କଙ୍କାଳ-ଅଗାର !
ଆଚମ୍ବିତେ,
ଯେ ପଥେ ବୁଲିଲି—
ମର୍ତ୍ତ୍ୟର ମାନବ ଶିଶୁ ମୃତ୍ୟୁ-ତଳେ ତହିଁ
ନଗରଦ୍ୱାରେ
ନଗରଦରେ
ପଡ଼ଅଛି ତଳ !!
ରାଜପଥ-ଧାରେ
ଅର୍ଦ୍ଧ ନଗ୍ନ ମର୍ତ୍ତ୍ୟ ନାରୀ ଗଢ଼େ ଧୂଳିଶେଯେ
କଙ୍କାଳର ଶିଶୁ ତାର ଶୁଷ୍କ ସ୍ତନ୍ୟ ଚୁମେ
କାନ୍ଦା ଶେଯେ
କ୍ଷୁଧାରେ ଅକୁଳେ !!
ରାଜପଥେ
ଧୂଳି-ଶେଯେ
ଷୋଡ଼ଶୀ ବାଳିକା
ଶୀତ ଦଗ୍ଧ
ପଦ୍ମ ସମ

କ୍ଷୁଧାଘାତେ
ଭଙ୍ଗିଅଛି
ଶୁଷ୍କତା ମ୍ଳାନମା !
ନାହିଁ ତାର ଚଞ୍ଚଳ ଯୌବନ
ନାହିଁ ତାର ତନୁର ତନମା !—
ନଗ୍ନଦ୍ୱାରେ
ପଥେ ଘାଟେ
ବୃକ୍ଷ-ମୂଳେ
ମୁଦନ୍ତି ନୟନ
ମର୍ତ୍ତ୍ୟ-ଶିଶୁ ନର ନାରୀ ଗଣ !
ରଚ ଶ୍ୱାନ ଶୃଗାଳର ବୀଭତ୍ସ ଶ୍ମଶାନ
ସ୍ୱାର୍ଥପର ଏ ସଂସାର ନଏ କି ସନ୍ଧାନ ?

ଅହେ ବିଶ୍ୱଜନ,
ନୁହେଁ ଏ ସ୍ୱପ୍ନର ଗାଥା
କଳ୍ପନାର କପୋଳ ରଚନ !
ବକ୍ଷେ ଧରି ଏତେ ସମାଧିର
ଚକ୍ଷେ ଲଭି ଏତେ ରିକ୍ତ ଛବି
ମୃତ୍ୟୁ-ଶେଯେ ପ୍ରାଣେ ଯେନ
ଅନ୍ନ ଜଳ ତବ
ଏ ଭବେ ବଞ୍ଚିବ ?
ନୁହେଁ ତା ହେବାର—
ହଥ ହେ ବଦାନ୍ୟ ମୋତେ ଚଳିଯିବ ମୃତ୍ୟୁ ପରପାର !!!—

ଦେଖ ଦେଖ ଗୁଲିହିବ ଦୂରେ
ଆସିଲଣି ମୃତ୍ୟୁ-ଦୂତ—
ବାନ୍ଧି ନେବ ମୋତେ ମୃତ୍ୟୁ-ପୁରେ !!

ଏ ବିରାଟ ସଂସାରର ଘରେ—
ଅପୂର୍ଣ୍ଣ ରହିଲା ମୋର ଜୀବନର ମଧୁ ଲୀଳାଛନ୍ଦ
ନାହିଁ ସେଥି ଅବଶୋଷ ଛଳେ !!!—
ଯେ’କାଳେ ଏ କାଳଗତି ହେବ ଅବସାନ
ବିଶ୍ୱର ଉଦୟାଚଳେ ମୁକ୍ତିର ତପନ
ଉଇଁବେ ଅଙ୍ଗରେ ବାନ୍ଧି ସାମ୍ୟ, ମୈତ୍ରୀ, ଦୟା
ସେ କାଳେ ଏ କ୍ଷୁଧିତ, ବଞ୍ଚିତ,
ବିଶ୍ୱ-ଦରବାରେ
ଲଭିବେ ହେ ମାନବର ଶ୍ରେଷ୍ଠ ଅଧିକାର !!—
ସେତେବେଳେ ଭାଇ—
ମନ୍ଦାକିନୀ ତଟୁଁ ଆସି
ଯୋଗାଇବ ମୋର
ଜୀବନର
ଶ୍ରେଷ୍ଠ ଜୟମାଲ୍ୟ !!!—



# ବରଷା

—୧—

ଗ୍ରୀଷ୍ମ-ସନ୍ତାପ-ଦଗ୍ଧା ଧରା-ବଧୂ ପରଶି
ଶୀତଳ ନୀରଧାରା ସରାଗରେ ବରଷି !
ମନ୍ଦ୍ର ନିନାଦେ ଟାଣି ନୀଳ ଅଭ୍ର-ପଡ଼ନୀ
ନବୀନ ଶ୍ୟାମ ବେଶେ ମଣ୍ଡାଇ ଏ ଧରଣୀ !
ରକ୍ତ ପ୍ରକୃତି-ମନେ ଭରି ଆଶା ଭରସା
—‘ମୁକ୍ତ ଆକାଶେ ଧୀରେ ନାଇଁ ଅସ ବରଷା !’—

—୨—

ପାଦପ-ଚୂଳେ ବସି ଗୃତକନ୍ୟା ଅନନ୍ଦେ
ପିଇ ତବ ସଲିଲ ରସମୟୀ ଜଳଦେ !—
ଉତ୍ତୁଙ୍ଗ ଗିରି-ଶିରେ ଘନବଥି ସଜାଇ
ଦର୍ଦ୍ଦୁରରାଜି କଣ୍ଠେ ଶୁଭ ତୂର୍ଯ୍ୟ ବଜାଇ ।
ଚପଳା ଛଳେ ତୁମେ ହସି ହସି ସହସା
—'ମୁକ୍ତ ଅକାଶେ ଧୀରେ ନଇଁଅସ ବରଷା ।'—

—୩—

ଉଦ୍ୟାନେ ଫୁଲ ଫୁଟି ସମୀରଣେ ନାଚିବ
ସୁପ୍ତ ପରିମଳ-ସୁଧା ମଧୁକରେ ଯାଚିବ !
ସ୍ନିଗ୍ଧ ଶ୍ୟାମ କେଦାରେ ମୃଦୁ ବାତ ସନ୍ତରି
ତାଳେ ତାଳେ ନର୍ତ୍ତିବ ମନୋହର ଲହରୀ ।
ଭ୍ରାନ୍ତ କୃଷକେ ତୁମେ ଅଶା-ପଥ-ଦରଶା
—'ମୁକ୍ତ ଅକାଶେ ଧୀରେ ନଇଁଅସ ବରଷା ।'—

—୪—

ତଟିନୀ ତୀର ତୋଳି ବହିଯାଉ ଗରବେ
କାନନେ ନାଚଯାନ୍ତୁ ହର୍ଷେ କେକୀ ସରବେ !
ସାଧବ-ବଧୂଗଣେ ଘରଙ୍ଗନ ମଣ୍ଡାଇ
ପ୍ରକୃତି-ଦେବୀ-କାନେ ପୁଷ୍ପଗୁଚ୍ଛ ଦୋଳାଇ ।
ସୁଷମା-ଦୁକୂଳରେ ମଣ୍ଡିଦେଇ ଭୂ ରସା
—'ମୁକ୍ତ ଆକାଶେ ଧୀରେ ନଇଁଅସ ବରଷା ।'—

( ୫ )

ତୃଷିତ ତରୁତୃଣେ ନବ ନୀର ପରଶି
ଅମୃତେ ପୂର୍ଣ୍ଣ କର ବଲ ଝିଲ ସରସୀ !
ବକ୍ଷେରେ ଉଙ୍ଗେ ସାଜ ଫଳ-ପୁଷ୍ପ-ପସର
ମୋହ ଜଗତ-ଜନେ ଢ଼ାଳ ବେଗେ ଅସର !
କବି-କଣ୍ଠରୁ ଶୁଭୁ ତବ ଯୋଗ୍ୟ ପ୍ରଶଂସା
—'ମୁକ୍ତ ଆକାଶେ ଧୀରେ ନଇଁଆସ ବରଷା !'



## ପଲ୍ଲୀ-ଶ୍ରୀ

( ୧ )

ଶାନ୍ତ ଶୀତଳ ଉଷାର ଆଲୋକେ
ବରଜ ବଧୂର ଶଯ୍ୟା !
ନବ ଯୌବନା ଜାଗେ ଅଙ୍ଗନେ
ନୟନେ ଜଡ଼ିତ ଲଜ୍ଜା !!—
କବରୀ-କୁସୁମ ଖସିପଡ଼େ ତଳେ
ସ୍ନିଗ୍ଧ ଅଧର ତାମ୍ବୂଳ ବୋଳେ !
ଦଳିତ ବସନ ବକ୍ଷେ ଓଟାରି
ଗୃହୁ ଅଙ୍ଗିନୀ ଚଳେ—
ଅଦୂର ଆମ୍ର କୁଞ୍ଜ-ବିତାନେ
ବଦ୍ଧୃତର କୋକିଳ ମଧୁ-ରୂପ-ଗାନେ !
ମଲ୍ଲି-ଫୁଲର ଗନ୍ଧ-ମାଦକେ
ତନୁ-ସୌରଭ ଖେଳେ !!—

ସ୍ପଢପାଦେ କରେ କୁସୁମ ବରଷା
ପଶ୍ଚି-ପଥେ ସେ ଶତ-ଦରଷା —
ବୀଣା-ରଞ୍ଜିନ-ସ୍ୱପିଣୀ !—
ଉଷାର ଅଲୋକେ ଜାଗେ ଅଙ୍ଗନେ
ନବ-ପ୍ରେମ-ଅନୁରାଗିଣୀ !! —

( ୨ )

ଅସ୍ତ-ଶିଖରେ ଢଳଇ ତପନ
ରକ୍ତ-ଲୋହିତ ଭାଟେ
କଳସୀ-କାଖରେ ଚଳଇ ରୂପସୀ
ନିର୍ଜନ ପାଣି-ଘାଟେ !—
ଲଳିତ ନୂପୁର-ଶିଞ୍ଜିତ ପଦେ
ଅଳସ ତନୁ କି ରଞ୍ଜିତ ମଦେ !
ପଟ-ଶିର-ତରୁ-ଡାଳେ ବିହଙ୍ଗ
ସଙ୍ଗୀତ ତାର ଗାଏ—
ଲୋଲ-ଅଞ୍ଚଳା ତନୁ ମେଲି ଜଳେ
ଉପହାସ କରେ କୁମୁଦ କମଳେ !
ସ୍ନିଗ୍ଧ ସୁନ୍ଦର ଶ୍ୟାମ-ତରୁ-ବୀଥି
ମୁଗ୍‌ଧେ ବାଳାକୁ ଶୃଙ୍ଗେ !!—
ମତ୍ତ ମଧୁପ ମଦିର-ପିପାସୀ
କମଳ ତେଆଗି ଗୁଞ୍ଜରେ ଆସି
ଚୁମ୍ବେ ତା' କଳା ବେଣେ !—
ସ୍ନାନ ଅବସାନେ ଫେରେ ଚଞ୍ଚଳା
ମଙ୍ଗଳମୟୀ ବେଶେ !!—

( ୩ )

ଦେବାଳୟ ତଳେ ସନ୍ଧ୍ୟା ଲଗନେ
ବାଜଇ ବଂଶୀ ମନ୍ଦ୍ର—

ତଟିନୀ ସେ' ପାର ନାଉକେଲ ବନେ
ହସଇ ପୂର୍ଣ୍ଣଚନ୍ଦ୍ର !!—

ସୌମ୍ୟ ମୂରତି ଶୋଭି-ଅନୁପମ
ଗୋଧୂଳି ଅଲୋକେ ଲକ୍ଷ୍ମୀର ସମ !
ମୌନ-ମହିମା-ମଧୁର ପରିବେ
ହସ୍ତେ ପ୍ରଦୀପ ଘେନ !—
ସନ୍ଧ-ତୁଳସୀ-ମୂଳେ ଗୁଞ୍ଜରେ
କା'ର ପ୍ରେମ ଭର ହୃଦ-କୁଞ୍ଜରେ !
ମୁଗ୍ଧ ଧୂଅନେ ମଥା ଢ଼ାଳେ ଯେବେ
ପୃଷ୍ଠେ ଦୋଳେ ତା' ବେଣୀ !!—
ଚଳକେ ହୁଏ ସେ ଘନ ଭାବାକୁଳା
କା'ର ରୂପ-ରସ ମଦେ ବିହ୍ୱଳା
......ଉଠଇ ଆକାଶେ ଚନ୍ଦ୍ର !
ସନ୍ଧ୍ୟା-ଲଗନେ ଦେବାଳୟ ତଳେ
ବାଜଇ ବଂଶୀ ମନ୍ଦ୍ର !!—

( ୪ )

ଜ୍ୟୋତ୍ସ୍ନା-ଯାମିନୀ ସ୍ଥିର ଗମ୍ଭୀର
ସ୍ତବ୍ଧ ବିପୁଳ ଧରା
ଚୂତ ବନ ତଳେ ଝରଇ ଶୁଭ୍ର—
ଫଗୁଣ-ସନ୍ଧ୍ୟା-ତାରା !!—
ଶୂନ୍ୟ ଶୟନେ ଉଲ୍ଲା ସେ ରାଧା
ଲଭଇ ବକ୍ଷେ କି ବେଦନା ବାଧା !
ଶଯ୍ୟା ବରଜି ଚପଳ ଚରଣେ
ଯାଏ ପିଞ୍ଜର ପାଶେ

ସୁପ୍ତ ଶାସ୍ତ୍ରରେ କହେ କି ଗୋପନ
ଉତ୍ତର ନାହିଁ କାହେ ପଗଣେ !
ବ୍ୟର୍ଥ ମାନସେ ଚମକେ ଚପଳା
କା'ର ଅସ୍ପଷ୍ଟ ଭଙ୍ଗେ !!—
ବିଷାଦେ ଷୋଡ଼ଶୀ କାଟେ ବଇବସି
ଶୂନ୍ୟ ଶୟନେ କାହା ରୂପ ସ୍ମରି !!—
ଆସଇ ମନେ ଉଷା—
ଜାଗଇ ପୁଣି ସେ କବିର କାବ୍ୟ—
କୁଞ୍ଜ-ବନର ଭୂଷା !!—



## ଶାହାଜାହାନଙ୍କର ବିଳାପ

[ ମମତାଜଙ୍କ ମୃତ୍ୟୁରେ ]

ମମତାଜ !
ପ୍ରାଣ-ପ୍ରିୟତମା !
ଅଗୋ ମୋର ବକ୍ଷ-ମନୋରମା !!
ସୁପ୍ତ କିମ୍ବା ଅଜ୍ଞାନ-ଅବେଶେ ଚକ୍ଷୁ ବ ଗୋଲପ ସମ ?
ଜାଗ ଜାଗ ରାଣୀ
ବଜାଅ ଗୋ କଣ୍ଠ-ଯନ୍ତ୍ରେ ପିକ-କଣ୍ଠ-ଜିଣା ମଧୁବାଣୀ !
ରକ୍ତ-ପଦ୍ମ-ମନୋରମ-ଶ୍ରୀପଦ-ମଞ୍ଜୀର ଏ ରାଜ-ପ୍ରାଙ୍ଗଣେ !—
ଶାନ୍ତ ହେଉ ପ୍ରାଣ ମୋର
ମୁଗ୍ଧ ହେଉ ଏ ରାଜ-ଭବନ ।

ମମତାଜ !
ଅଗୋ ମୋର ପ୍ରିୟ ମମତାଜ !
ଅଭିମାନେ ନ ଉଠ ଛ ଅବା
କି ଦୋଷ ଦେଖିଲ ସଖି ଶ୍ରୀପଦ-ପୂଜନେ ?
ନିମିଳିତ ନେତ୍ରଯୁଗେ ନିଦ୍ରା ତବ କିପାଁ ?

ଜାଣିନା ପ୍ରେୟସୀ
ନବ ନୀଳ ଘନ କିଗୋ ହଷିବ ସୁନ୍ଦର
ଚଞ୍ଚଳ ଗୃହୁ ଚପଳା ମୃଦୁ-ହାସ୍ୟ-ବିନା ?
ଅସୀମ ସାଗର କା'ରେ ଆଲିଙ୍ଗିବ ତରଙ୍ଗ ଛଳନେ
ପାଶେ ତାର ନ ଗାଇଲେ ଗୀତି—
ଗିରି-ସୁତା କଳ-କଲ୍ଲୋଳିନୀ ?
ହସଇ କି ଜନ-ନେତ୍ରେ ସ୍ନିଗ୍ଧ ସୁରୁଚିର
ବିବିକ୍ତ କାନନ-ପଥେ ମୁକୁଳା ପାଦପ
ବକ୍ଷ ତାର ନ ମଣ୍ଡିଲେ ପଲ୍ଲବିତା ଲତା ?
ଉପନ ପାଇବ କାହୁଁ ସୌରଭ ଆମୋଦ
ପ୍ରେମେ ନ ଫୁଟଇ ଯେବେ ସରେ ସରୋଜିନୀ !!
ତେଣୁ ଗୋ ସଜନୀ
ଅଲକ୍ତା-ଚରଣେ ମମ ପ୍ରେମାଶ୍ଳେଷ ଘେନ
ନିଦ୍ରା ତେଜ ବଜାଅ ଗୋ ସୁପଞ୍ଚମେ ବାଣୀର ବେହାଗ ।
ରକ୍ତାଧରେ ଅଙ୍କିଦିଅ ସଖି
ମୃଦୁ ମଧୁ ହସ-ରେଖା ତବ
ଅଙ୍ଗେ ଅଙ୍ଗେ ଆଣ ଶିହରଣ ଶ୍ରୀକର ପରଶେ
ଧନ୍ୟ କର ଏ ମୋର ଜୀବନ
ଅଗୋ ମୋର ରୂପ-ରାଣୀ
ଜ୍ୟୋତିର୍ମୟୀ ସାକି

ମମତାଜ !—
ମମତାଜ ! ମମତାଜ !
ଭ୍ରାନ୍ତ କି'ବା ଆଜ ମୁଁ ସଂସାରେ ?—
ସତେ କି ଯାଇଛ ତୁମେ ଲୀଳାସ୍ମିତ ନନ୍ଦନ-କାନନ
ମନେ ହେଉଛ ସୁଷମା-ସନ୍ଧାନ !—
ପଛେ ଛାଡ଼ି ବିଶ୍ୱ-ମୋହ-ମାୟା—
ଅଶେଷ ଝଞ୍ଜାଳମୟ ହା-ହା-କାର ଜୀବନ-ଅୟନ
ବିଳାସ-ବ୍ୟସନ-ପୂର୍ଣ୍ଣ ରାଜପୁରୀ କନକ-ସଉଧ !
ଯାଏ ନା ତ ପ୍ରତେ
ଛଳେ ମାନ ନ ପାରଇ ସବୁ
ଅନ୍ତିମ ତଳପେ ତୁମେ ନିଦ୍ରାଗତା ବୋଲି
ବୁଝି କି ପାରୁଛ ସଖି ହୃଦୟ-ବେଦନା
ମର୍ମେ ମର୍ମେ ଯାହା ହୁଅଇ ଗୋ କଷଣ ଅପାର !
ଆକୁଳିତ ପ୍ରାଣ-ପକ୍ଷୀ ମୋର
ଗୁମରି ଗୁମରି କାନ୍ଦେ ତୁମରି ବିରହେ ।
ନୟନୁ ପଡ଼ଇ ଝରି ଝରଣାର ସମ
ଗଣ୍ଡ ଦେଶେ ଲୋତକର ଧାର ।
ଦଗେ ଦଗେ ଘୋଟେ ଘନ ବିଷାଦ-ତିମିର—
ନେତ୍ରପଥ ହଜିଯାଏ ସେଥି ।

ରୂପସୀ ଉର୍ବଶୀ !
ଦେଖ ତବ ବିଚ୍ଛେଦେ ଗୋ କାନ୍ଦଇ ଝନ୍ଦସୀ !!
ସମୀରେ ମର୍ମରି କାନ୍ଦେ ଗଛପତ୍ର-ଲତା
ସ୍ଥାନେ ସ୍ଥାନେ ସ୍ତବ୍ଧ ନୀରବତା !!—
ଦୀପ୍ତି ହୀନ ନୀରବ ନଭସେ
ନୀଡ଼ମୁଖୀ ବିହଙ୍ଗମ ରାଜି
ଉଡ଼ିଯାନ୍ତି ନୈରାଶ୍ୟେ ଗୋ ଆକୁଳିତ କ୍ରନ୍ଦନର ସ୍ୱରେ ।

ପଥର ପଥିକ
ବେଦନା-ମଥିତ କ’ବା ଚଳଇଁ ମନ୍ତ୍ରରେ !
ବକ୍ଷ ମୋର ଭାଙ୍ଗିପଡ଼େ
ହା-ହା-କାରେ
ଦେଖୁଛ କି ତାହା
ଅଗୋ ମୋର ହୃଦ-ଅନନ୍ତତା
ମମତାଜ !—
ସେବେ,
ପଲ୍ଲବିତ ଜୀବନ-ଯୌବନେ
ଜାଗିଲା ଏ ପ୍ରାଣେ—
ପ୍ରଣୟର ଗଭୀର ପିପାସା;
ସପ୍ତ ସିନ୍ଧୁ-ତରଙ୍ଗ-ଇଙ୍ଗିତେ
ଲଭି ନ ପାରିଲା ଯାହା ଥରେ ମାତ୍ର ଶାନ୍ତି;
ଅବତରି କେ’ ମଙ୍ଗଳ-ରଥେ
ତୁମେ ଗୋ ଉର୍ବଶୀ
ହସାଇଲ ପ୍ରଭ ଦବା ମୋ ଉଷା-ଉଷସୀ !
ଫୁଟାଇଲ ନୟନ ପଲକେ
ପ୍ରାଣର ସେ ଗଭୀର ପିପାସା !
ତନ୍ତ୍ରେ ତନ୍ତ୍ରେ ନଗୃଇଲ ସ୍ନୀକର ପରଶେ
ମଞ୍ଜୁ ମୁଗ୍ଧ ପ୍ରେମର ଲହରୀ;
ଚପଳ ଚରଣ ପାତେ ଧନ୍ୟ ହେଲା ରଜପୁଞ୍ଜ ମୋର !—
ଧନ୍ୟ ହେଲା ଏ ମୋର ଜୀବନ !!—
ମନେ ମୋର ଥିଲା ଏଇ ଆଶା
ବିଶାଳ ଜଗତ-ଜନେ ତବ ପ୍ରେମ-ଗାନେ
ବାନ୍ଧିବ ଜୀବନ-ତନ୍ତ୍ରୀ ;—

ଭାରତ-ଧରଣୀ ବକ୍ଷେ ରଖିଯିବ ସଖି
ତୁମ ଆମ ହୃଦୟର ଗଭୀର ପ୍ରଣୟ,
ସେ ବାସନା ସେ ଆଶା ତ ହୋଇନ ସଫଳ
ଅପୂର୍ଣ୍ଣତା-ପଥେ—
ଗୁଲିଗଲ କେଉଁ ଲାଭ ଆଶେ ?
ମରଣ କ ତୁଟାଏ ଗୋ ଦୁଇଟି ପ୍ରାଣର
ପ୍ରଣୟ-ବନ୍ଧନ ?
ଅନ୍ତରୁ ଅନ୍ତର ସେ'କ କରିଦିଏ ଭିନ୍ନ ?
ଅସମ୍ଭବ,
ଅସମ୍ଭବ ଲାଗଇ ତ ମୋତେ !
ମରଣ ପରାସ୍ତ ସଦା
ପବିତ୍ର ପ୍ରେମ-ବନ୍ଧନ ପାଶେ ଏ ନିଶ୍ଚିତ !!—
ତେବେ ତୁମେ ନ ହେଲ୍ଲ ଜନ୍ମା
ଆଃ ଗୋ ମୋର ରୂପ-ଶ୍ରେଣୀ
ବିଶ୍ୱ-ବନ୍ଦନୀୟା
ମମତାଜ !!!—

ରୂପସୀ ଗୋ ମମ
ମୁକ୍ତ ତୁମେ ସଂସାର-କାରାରୁ
ସୁମଧୁର ଅମୃତ ଲଭନେ ।
ନନ୍ଦନ-କାନନ-ମଞ୍ଜୁ-ନିକୁଞ୍ଜ-ବିତାନେ
ଲାଗିଥିବ ତବ ଖେଳ ଏବେ
କଳ୍ପର କଲ୍ପନା ସାଥେ ପାରିଜାତ-ସୌରଭ-ଆମୋଦେ ।
ସୌଭାଗ୍ୟ-ଶାଳିନୀ ସଖି
ଅଛ ଭାଗ୍ୟବତୀ !
କିନ୍ତୁ ତୁମେ ଭାବିବ କି ଥରେ
ଝିଲ୍ଲି ମୋର ହୃଦୟ-କମ୍ପଣ ?

ଢକ୍ତ ମୋତେ ଲଗଇ ଗୋ ଯାହା ।
ଢକ୍ତ ମୋତେ ଲଗଇ ଯେ ଅଙ୍କ
ରାଜ-ଶିଶୁ ବିଳାସ-ବ୍ୟସନ
ଦୀପ୍ତିମୟ ସ୍ୱର୍ଣ୍ଣ ରାଜପୁରୀ !!—
ମମତାଜ ଅଗୋ,
ଅତୃପ୍ତ ରହିଛି ପ୍ରାଣେ ପ୍ରଣୟ-ବାସନା
ପ୍ରାଣେ ପ୍ରାଣେ ଜାଗି ଉଠେ ଅବଶେଷ ଏକ ।
ତୁମର ଏ ତନୁଲତା ଦୀପ୍ତିହୀନ ଅସ୍ୱାହୀନ ହେଲେହେଁ ସଜନୀ
ମାଟିତଳେ ଦେବାକୁ ସମାଧି
ମନ ମୋର ବଲେ ନା ମୁକର ।
ତୁମର ଏ ସ୍ୱର୍ଣ୍ଣତନୁ ସମ
ଗଢ଼ିବାକୁ ସ୍ୱର୍ଣ୍ଣିର ମନ୍ଦିର ସମାଧିର ବକ୍ଷେ ତବ
ମନେ ମୋର ଜାଗଇ ପିପାସା ।
ତୋଳିବି ମୁଁ କଳ୍ପନାର କାନ୍ତ ଅଟ୍ଟାଳିକା
ତୁମର ସମାଧି-ବକ୍ଷେ ବିଶ୍ୱ-ଶ୍ରେଷ୍ଠ କାନ୍ତ କଳାମୟ ।
ପ୍ରତି ସନ୍ଧ୍ୟା-ଉଷା-ଅବକାଶେ
ବିଲୋକିବି ସେ ରୁଚିର ସୌଧେ
ଯାର କକ୍ଷେ ମମତାଜ ଶୋଇଥିବ ତୁମେ
ନୀରବରେ
ପ୍ରେମଭରେ
ହରଷରେ ।
ପ୍ରାଣ ଥିବାଯାଏ ସଖି ଏ ମର ଭୁବନେ
ତୁମ ନାମେ ସମାଧି-ସଉଧେ
ଡାକୁଥିବ ଆନନ୍ଦେ ମୁଁ
—"ତାଜମହଲ"—
ତୁମ ଆମ ପ୍ରଣୟର ପରମ ସ୍ମାରକ

କେବଳ ଯୁଗେ ଯୁଗେ ତାହା ଜଗତେ ଅତୁଳ
ଭବିଷ୍ୟ-ସପନ ହଦେ ଦେଖିବେ ମାନବେ
ସବିସ୍ମୟେ !!!—
ଜୀବନ-ଯାତ୍ରାର ଶେଷେ ସରଗର ପଥେ
ତୁମ ସାଥେ ଦେଖାହେବ ଯେବେ
ଗଢ଼ିବା ଜୀବନ ନୂଆ ମଧୁର ମିଳନେ—
ସ୍ୱର୍ଗ-ନନ୍ଦନେ !!—
ସେ ଶୁଭ ଦିବସ ଅଶାୟୀ ଗୋ ମୂର୍ତ୍ତି
ଯାଅ ତେବେ ସୁଖେ ଥାଅ ନନ୍ଦନ-କାନନେ
ଅଟଗୋ ମୋର ସ୍ୱର୍ଗ ବିଳାସିନୀ
ମମତାଜ !!!—



## ବସନ୍ତ-ସନ୍ଧ୍ୟା

(୧)

କାନ୍ତ ଶୋଭନ
ଶୋଭା-ବିମୋହନ
ଶାନ୍ତ ଏ ମଧୁ···—···ଋତୁରେ !
ହୃଦ-ନନ୍ଦନେ
ମଞ୍ଜୁଳ ମନେ
ଶତ ଶୋଭା ଅଳ······ମଞ୍ଚରେ !!—

ଯୌବନେ ଫୁଟେ
ସୌରଭେ ଲୁଟେ
ଗୌରବେ ଫୁଲ···କୁଞ୍ଜରେ !

ହେମ-ଶୀତ ଭୀତି
ମଦନ୍ତ-ପିୟାସୀ
ମତ୍ତ ମଧୁପ……ଗୁଞ୍ଜରେ ।।—
ମାନଦ-ସୁଷମା—
ଛବି-ମଧୁରିମା
ଦଶେ ଦଶେ ଅଙ୍କ…ଧଣ୍ଡରେ ।
କାନ୍ତ ଶୋଭନ
ଶୋଭ୍ର ବିମୋହନ
ଶାନ୍ତ ଏ ମଧୁ……ସଞ୍ଚରେ ।।—

( ୨ )

ନଗ୍ନ ଗଗନେ
ପବନେ କାନନେ
ଖେଳ ଉଠେ କି'ବା…ମୂର୍ଚ୍ଛନା ।
ବଣ୍ଟ-ରମଣୀ—
ଅଞ୍ଚଳ ତଳେ
ମନ୍ଦ୍ରିତ ମଧୁ……ଅର୍ଚ୍ଚନା ।।—
ଶ୍ୟାମ ବନ-କେଶେ
ଧୂସରିତ ବେଶେ
ବିରଚି ବିପୁଳ……ସର୍ଜନା ।
ଲଳିତ ଲପନେ
ଟେକି' ଗୋ ସଙ୍ଗୋପନେ
କୁଙ୍କୁମ କରେ……ମାର୍ଜନା ।।—
ବାସନ୍ତୀ-ସରଳା
ରସ-ସ୍ଫୁରିତ ରଙ୍ଗା
କଳକଣ୍ଠ ବିପୁଳ…ବ୍ୟଞ୍ଜନା ।

ନଗ୍ନ ଗଗନେ
ପବନ କାନନେ
ଖେଳି ଉଠେ କି'ବା...ମୂର୍ଚ୍ଛନା !!—

( ୩ )

କେ' ସେ ରସମୟୀ
ଅନ୍ତର-ଜୟୀ
ଢାଳିଛି ଏ ମଧୁ ... ସଞ୍ଜଧେ ।
ବାଉଳା ପକ୍ଷୀଟି
ଗାଉଛି ଗୀତଟି
ସୁଶୋଭନ ଶ୍ୟାମ...କୁଞ୍ଜରେ !!

ଉର୍ବଶୀ ନବ
ସାଜ ଅଭିନବ
ବେଶ ବନଫୁଲ......ପୁଞ୍ଜରେ ।
ବଞ୍ଜୁଳ ବନେ
ମଞ୍ଜୁଳ ମନେ
ବୀଣା ତାନେ ତାନେ...ଗୁଞ୍ଜରେ

କା' ମଧୁ ପୂରବୀ
ରକ୍ତ କରବୀ
ଦଗେ ଦଗେ ଅଙ୍ଗ...ସଞ୍ଚରେ
କାନ୍ତ-ଶୋଭନ—
ଶୋଭ୍ର-ବିମୋହନ
ଶାନ୍ତ ଏ ମଧୁ...—...ସଞ୍ଜରେ ।।—



# ବସନ୍ତ-ଜ୍ୟୋତ୍ସ୍ନା

( ୧ )

ପବଣ ମୋହର ହସେ ରେ ମୃଦୁଳେ
ଜ୍ୟୋତ୍ସ୍ନାର ସମ ହସେ ।

ଚଉଦିଗେ ଶୁଭ୍ର ଜ୍ୟୋତ୍ସ୍ନା ବିକାଶ
ହସେ ରେ କାନନ ହସେ ରେ ଆକାଶ
ହସେ ରେ ମଧୁରେ ଦିକ୍‌ବଧୂ-ବାଳା
ଜ୍ୟୋତ୍ସ୍ନା-ଦୁକୂଳ ବେଶେ.

ପବଣ ମୋହର ହସେ ରେ ମୃଦୁଳେ
ଜ୍ୟୋତ୍ସ୍ନାର ସମ ହସେ ।

( ୨ )

ନିଶୀଥ-ପାଗଳ-ମଳୟ ବହେ ରେ
ସୁମନ-ସୌରଭ ଚୋରାଇ ।

ଉଲ୍ଲାସେ ଚୂତ ଶାଖା ସନ ସନ
ଝିଲ୍ଲି-ରବରେ ମୁଖରିତ ବନ—
କୁଞ୍ଜ-କୁଳାୟେ ବିହଗର ସ୍ୱନ
ମୁଗ୍ଧ ହୃଦୟେ ବାଜଇ;

ନିଶୀଥ-ପାଗଳ-ମଳୟ ବହେ ରେ
ସୁମନ-ସୌରଭ ଚୋରାଇ !—

( ୩ )

ପଲ୍ଲି-କୁଟୀର ଜ୍ୟୋତ୍ସ୍ନା ପରଶେ
ସଉଧର ସମ ଦଶେ !

କେ' ବିହଗଯୁଗ ମୁଗ୍ଧ ଜୀବନେ
ବିଭୋର ତା' କୋଳେ ବାହୁ-ବନ୍ଧନେ !
ଲୀଳାୟିତ ଶେଯ ସ୍ନିଗ୍ଧ ସପନେ
ପ୍ରେମର ଆବେଗ ମିଶେ
ପଲ୍ଲି-କୁଟୀର ଜ୍ୟୋତ୍ସ୍ନା ପରଶେ
ସଉଧର ସମ ଦଶେ !!—

( ୪ )

କେ' ଗୋ ତୁମେ ଅଭିସାରିକାର ବେଶେ
ସୁଦୂରେ ଚଳୁଛ ନୀରବେ ?
ଜ୍ୟୋତ୍ସ୍ନା-କଲ୍ଲୋଳ ତନୁ ଅଞ୍ଚଳ
ପ୍ରେମ-ଆହ୍ୱାନେ ହୁଏ ଚଞ୍ଚଳ ?
ବେଣୀ-ଫୁଲ-ଗନ୍ଧ ସମୀରଣେ ଦୋଳେ
ଯୌବନ-ମଦ-ଗରବେ
କେ' ଗୋ ତୁମେ ଅଭିସାରିକାର ବେଶେ
ସୁଦୂରେ ଚଳୁଛ ନୀରବେ ।—

( ୫ )

ଧରଣୀ-ରାଣୀ କି ସଜ୍ଜିତା ଆଜ
ଅମଳ ଧବଳ ବସନେ

ତାରକିତ ନୀଳ ଗଗନର ତଳେ
ଶୁଭ୍ର-ବେଶା ସେ ବସିଅଛି ଭେଳେ !
ମୁଗ୍ଧ ଧ୍ୟାନେ ମନ ରଞ୍ଜାଇ
ଚିନ୍ମୟ-ଗୌର-ଚରଣେ
ଧରଣୀ-ରାଣୀ କି ସଜ୍ଜିତା ଆଜି
ଅମଳ ଧବଳ ବସନେ !—

( ୭ )

ପରାଣ ମୋହର ହସେରେ ମୃଦୁଳେ
ଜ୍ୟୋତ୍ସ୍ନାର ସମ ହସେ ।
ନାସାରେ ଗୁମରେ କୁସୁମ-ଗନ୍ଧ
କଣ୍ଠେ ବାଜେ କା' ମଧୁର ଛନ୍ଦ !
ଅଜଣା କିଏ ସେ ଦୂରେ ଦୂରେ ଥାଇ
ବିଶ୍ୱ-ପ୍ରେମ-ଭାଷା ଭାଷେ
ପରାଣ ମୋହର ହସେରେ ମୃଦୁଳେ
ଜ୍ୟୋତ୍ସ୍ନାର ସମ ହସେ !.!—



## ଆସିବେ ଗୋ ଆଜି

ଆଜି ନିର୍ଜନ ନବ ନିଶୀଥ-କୁଞ୍ଜ-ଦୁଆରେ
ଭାସି ଆସିବେ ଗୋ ପ୍ରିୟତମ ମମ
ଫେନିଳ ଜ୍ୟୋତ୍ସ୍ନା-ଜୁଆରେ !!—

ଯୌବନ-ନଦୀ କରୁ ଚଞ୍ଚଳ
ମନ୍ଦ ମଳୟେ ମେଲି ଅଞ୍ଚଳ !
ଚମ୍ପକ ମାଳ କମ୍ର ଲକ୍ଷ୍ମରେ
ନମ୍ର ନୂତନ ଶୋଭରେ—
ଆଜ ଅସିବେ ଗୋ ମମ ପ୍ରାଣ-ପ୍ରିୟତମ
ନଶୀଥ-କୁଞ୍ଜ-ଦୁଆରେ !!!—

ଅଜ, ଅସିବେ ସୁନ୍ଦର ପ୍ରାଣର ପିୟାସୀ
ମଞ୍ଜୁଳ ମଧୁ ଅଭ୍ରରେ—
ଅଜ, ଚଞ୍ଚଳ କରୁ ଦୂର ବନଭୂମି—
ଅମ୍ର-କାନନ ଶୋଭରେ !

ଫୁଟାଇ ରଜନୀଗନ୍ଧା ଅୟନେ
ସୌରଭ ଢାଳି ମଦିର-ନୟନେ !
ହସାଇ ଶ୍ୟାମଳ ଶୁଭ୍ର ଏ ଧରା
ମନ୍ଦ୍ରିତ ମଧୁ-ହାସରେ !—
ଆଜ, ଅସିବେ ସୁନ୍ଦର ପ୍ରାଣର ପିୟାସୀ
ମଞ୍ଜୁଳ ମଧୁ ବେଶରେ !!!—

ଅଜ, ନବ ଯୌବନ-ମଦ-ରଞ୍ଜିତ ନୟନେ—
ଅସିବେ ପ୍ରାଣର ଗଭୀର ଗୋପନ
ଲଳିତ ପୁଷ୍ପ-ଶୟନେ !

ମଧୁର କଣ୍ଠେ ବଜାଇ ବାଂଶୋରୀ
ବିଶ୍ୱ-ଯାତନା ଯନ୍ତ୍ରଣ ସଂହାରୁ !
ବିଶ୍ୱର ଶତ ମାଧୁର୍ଯ୍ୟ ଫୁଟାଇ
ନିଃସ୍ୱ ଏ ମମ ଜୀବନେ
ଅଜ, ଯୌବନ-ନବ-ମଦ-ରଞ୍ଜିତ ନୟନେ !!!—

ଆଜି, ଆସିବେ ଟୋ ମୋର ପ୍ରାଣର ଦେବତା
ବିପୁଳ ବିଶ୍ୱ-ଅୟନେ
ଧୀରେ, ବିପୁଳ ରାଗିଣୀ ସ୍ୱରର ମୁଗ୍ଧ ଲଗନେ !
ଯାନହୀନ ବସି ସିନ୍ଧୁ ଏ କୂଳେ
ପ୍ରେମ-ଅନୁରାଗ-ଭକ୍ତିର ଫୁଲେ ।
ସମ୍ଭାର ସୃଜି ମୁଗ୍ଧ ପରାଣେ
ବନ୍ଦିବି ଗୁରୁ ଚରଣେ —
ଆଜି, ଆସିବେ ଗୋ ମୋର ପ୍ରାଣ-ପ୍ରିୟତମ
ନିଶୀଥ-କୁଞ୍ଜ-ଭବନେ !!!—



୨

## ଆଶା

କାନ୍ତ କୁସୁମ ଶୋଭା-ଅନୁପମ
ଶାନ୍ତ-ଗଗନ-ତାରା—
ଶ୍ୟାମଳ ବନାନୀ ସ୍ୱର୍ଣ୍ଣ ଦାମିନୀ
ଫାଲ୍‌ଗୁନ-ମଧୁ-ଧାରା !!
ମଧୁର ମଦିରା ପୀରତି-ଅଧୀରା-
କୁନ୍ତଳ-ମଧୁରିମା !
ବୀଣାର ଛନ୍ଦ କୁସୁମ-ଗନ୍ଧ
ଶ୍ରେଷ୍ଠ ରୂପର ସୀମା !!—
କୋକିଳ-କୂଜନ ଅଳି-ଗୁଞ୍ଜନ
ନିର୍ଝର କଳତାନ
ବିଶ୍ୱର ସୁଖ ଶତ ହସ ମୁଖ
ଅମୃତ-ଭରା ଗାନ !

ସକଳ କାନ୍ତି ସକଳ ଶାନ୍ତି
ଲୁଣ୍ଠି କଲେ ମୋ ସନେ
ତୃପ୍ତି ତ କେବେ ନ ଭରବ ପ୍ରିୟୁ
ଅତୃପ୍ତ ମୋର ମନେ !
ଯେତେ ମୁଁ ପାଇବ ତେତେ ମୁଁ ଗୃହିଁବ
ମେଣ୍ଟିବ ନାହିଁ ଆଶା—
ଡାଇବାକୁ ପୁଣି ଅନ୍ତର-ଘଣୀ
ଗୁଞ୍ଜରବ ଯେ ଭୃଷା !!!—

✻ ସମାପ୍ତ ✻



Printed by C. M. Das at the Jagaran Press,
Cuttack. 1946

—ମୁଦ୍ର ପ୍ରତୀକ୍ଷାରେ—

ପାଠକ-ମହଲର ବିସ୍ମୟ ଅବଦାନ

ରୋମାଞ୍ଚକା ସ୍ତ ଚଳନ୍ତରଙ୍ଗର

—ସହସ୍ର ରଙ୍ଗିନ୍ ଛବି ନେଇ—

**କଥାକାର କୁମାର ଶ୍ରୀବତ୍ସଙ୍କର**

ରକ୍ତ ଝରଣାର

# ଜଳ-ମର୍ମର

* * *

ଓଡ଼ିଶାର ରୋମାଣ୍ଟିକ୍ କଥାକାର

ପୁନରୁଦ୍ଧାର କର

—ପ୍ରକାଶ ପାଉଛି—

ପାଠକ-ମହଲର ବିସ୍ମୟ ଅବଦାନ

# ଯୌବନର ସ୍ୱପ୍ନ

ଉଷା ମେଘ ପରି ଝଲ୍‌କା

ସକାଳର ଝରଣା ପରି ଛନ୍ଦଶୀଳ

ଯୌବନର ଅକପଟ-ଆତ୍ମପ୍ରକାଶରେ ଭରପୂର

—ଲେଖିଛନ୍ତି—

ଓଡ଼ିଶାର ରୋମାଣ୍ଟିକ୍ ଯୁଗର ପୁନଃନିର୍ମାତା

ତରୁଣ କବି

**ଶ୍ରୀ ଶ୍ରୀବତ୍ସ ନାୟକ**

— ଅପେକ୍ଷାରେ ରହନ୍ତୁ —